# ଅଗଡ଼ ବଗଡ଼ ଝାଇଁକି ଝୁମା।



## ଡକ୍ଟର ବସନ୍ତ କିଶୋର ସାହୁ

# ଅଗଡ ବଗଡ ଝାଇଁକି ଝୁମ୍ପା

**ଡକ୍ଟର ବସନ୍ତ କିଶୋର ସାହୁ**
ଗ୍ରା/ପୋ - କୁସୁପୁର
ଜିଲ୍ଲା : କଟକ-୭୫୪୨୮୫

ପ୍ରକାଶକ :
**ଶୌର୍ଯ୍ୟ ପ୍ରକାଶନ**
ଓଡ଼ିଆ ବଜାର, କଟକ-୧

ପ୍ରଥମ ମୁଦ୍ରଣ : ୧୯୯୭



ଅକ୍ଷରସଜ୍ଜା :
**ଶୌର୍ଯ୍ୟ ଡ଼ି.ଟି.ପି.**
ଓଡ଼ିଆ ବଜାର, କଟକ-୧

ମୂଲ୍ୟ : ଟ ୯/-

# ସୂଚୀପତ୍ର

# କଇଅଁ କାକୁଡି ପିତା ନଳିତା



କଇଅଁ କାକୁଡି ପିତା ନଳିତା
ମାଆ ବଳୁଥିଲେ ବସି ବଳିତା ।
ବଳିତାରେ ଘିଅ ଲଗାଇ ଦିଅ
ବଳିତା ଜଳିଲେ ହୁଏ ଆଲୁଅ ।



ଆଲୁଅରେ ଘର ଆଲୋକ ମୟ
କେମିତି ହୋଇଲା ତୁମେତ କୁହ ।
ସେଇ ଆଲୁଅରେ ଖେଳୁଛି ପୁଅ
ପୁଅକୁ ଖେଳନା କଣେଇ ଦିଅ ।

କଣ୍ଢେଇରେ ଥିବ ଗୋଟିଏ ଚାବି
ପୁଅ ତାକୁ ଦେଖି ବସିବ ଭାବି ।







ଭାବି ଭାବି ଦେବ ଚାବିକୁ ମୋଡି
କଣ୍ଢେଇ ନାଚିବ ଧରିକି ବାଡି ।
ବାଡିରେ ବାଜିବ ଡମ୍ବରୁ ବାଜା
ଦେଖ ଦେଖ ଭାଇ କେମିତି ମଜା ।



ମଜା ଦେଖି ପୁଅ ନାଚିବ ଢେଇଁ
ଖୁସିରେ ମାଆବି ଆସିବେ ଧାଇଁ ।
କହିବେ ପୁଅ ମୋ ଜଗତଜିତା
ଉଡିବ ତା ମୁଣ୍ଡେ ପାଲିଙ୍କି ଛତା ।

# ଆଇକମ୍ ବାଇକମ୍ ତାରାତୂରୀ

ଆଇକ୍ ବାଇକମ୍ ତାରାତୂରୀ
ଆସ ଆସ ଖେଳିବା ଚକାଭଉଁରୀ ।
ଗୀତର ସୁରରେ କମ୍ପିବ ଦାଣ୍ଡ
ଘିରି ଘିରି ହୋଇ ଘୂରିବ ମୁଣ୍ଡ ।



ମୁଣ୍ଡ ଘୂରି ଗଲେ ଘୂରିବ ସବୁ
ଖେଳାଳୀ ବାପୁଡ଼ା ହୋଇବ କାବୁ ।
ଭୂଇଁରେ ବିଚରା ପଡ଼ିବ ଲୋଟି
ଅନ୍ୟ ଖେଳାଳୀଏ କରିବେ ପାଟି ।

ପାଟି ଶୁଣି ମାଆ ଆସିବେ ଧାଇଁ
କହିବେ କଅଣ ହେଲା କହ୍ନାଇ ।
କହ୍ନାଇ ଉଠିକି ମାରିବ ତାଳି
ଆଇକମ୍ ବାଇକମ୍ ତାରାତୂରୀ ।।



ମାଆ ପଳାଇଲେ ଘରକୁ ହସି
ପିଲାଏ ନାଚିଲେ ହୋଇଣ ଖୁସି ।
ଦାଣ୍ଡରେ ବାଜୁଛି ଯୋଡିମହୁରୀ
ଖେଳିବା ଆସ ଚକାଉଭଁରୀ ।।



# ଅଗଡ ବଗଡ ଝାଇଁକି ଝୁମ୍ପା



ଅଗଡ ବଗଡ ଝାଇଁକି ଝୁମ୍ପା
ଝୁମ୍ପାରେ ଲାଗିଛି କଟକି ଚମ୍ପା ।
ଚମ୍ପାଫୁଲ ଝିଅ ବସିଛି ରୁଷି
ସୁନାଚାନ୍ଦ ଦେଲେ ହୋଇବ ଖୁସି ।

ଖୁସି ବାସି ଆଣେ ଜୀବନେ ସୁଖ
ଅସୁଖି ମଣିଷ ଭୋଗଇ ଦୁଃଖ ।
ଦୁଃଖ ପରେ ସୁଖ ବିଧାତା ନୀତି
ଯେମିତି ଆସଇ ଦିନ ଓ ରାତି ।



ରାତିରେ ପଡଇ ପୁନେଇ ଜହ୍ନ
ଜହ୍ନପରି ସଫା କରିବ ମନ ।
ମନ ମୁନ ଦେଇ କରିଲେ କାମ
ବାପା ମାଆଙ୍କର ବଢ଼ିବ ନାମ ।



ନାମ ଧାମ ସବୁ ପଛକୁ ଥାଉ
ଦେଶସେବା କରି ଜୀବନ ଯାଉ ।

# ଇକନ ମିକନ ଚିକନ ଚାଇଁ



ଇକନ ମିକନ ଚିକନ ଚାଇଁ
ତୋଫା ଜହ୍ନ ହସେ ଆକାଶେ ରହି ।
ତାରା ମିଟି ମିଟି କେତେ ଯେ କାହିଁ
ସକାଳ ହୋଇଲେ ଗୋଟିଏ ନାହିଁ ।





କେଉଁ କାରିଗର ସବୁ ଗଢ଼ିଲା
ଜହ୍ନ ବଢ଼ି ବଢ଼ି ପୁଣି ଛିଡ଼ିଲା ।
ଫଳ ପାଚିଯାଇ ଆପେ ଝଡ଼ିଲା
ଶୀତ ପରେ ପରେ ଖରା ବଢ଼ିଲା ।

ବଢ଼ିବା କମିବା ଦୂନିଆ ରୀତି
ମରେ ନାହିଁ ସାପ ଛାଡିଲେ କାତି ।
ବଇଷିମ ହେଲେ ନଥାଏ ଜାତି
ଦିନ ପରେ ଆସେ ପୁଉଣି ରାତି ।।

ଜାତି ଭେଦଭାବ ରଖନା କେହି
ସଭିଏଁ ଆମେତ ମଣିଷ ଭାଇ ।
ଭେଦଭାବ କଥା ପୋଛି ମନରୁ
ଭଲକାମ କର ପିଲା ଦିନରୁ ।।



# ଆଙ୍ଗଟି ମାଙ୍ଗଟି

ଆଙ୍ଗଟି ମାଙ୍ଗଟି କରନା ପାଟି
ଘଣ୍ଟା ନବାଜୁଣୁ ଇସ୍କୁଲ ଛୁଟି ।
ଇସ୍କୁଲରେ ଥିଲା ପିଜୁଳି ବାଡି
ସେଠି ଖେଳୁ ଆମେ ଡାଳି ମାଙ୍କୁଡି ।।



ଡାଳି ମାଙ୍କୁଡିରେ ବହୁତ ମଜା
କହୁଥିଲେ ଦିନେ କପିଳ ଅଜା ।
କପିଳ ଅଜାଙ୍କ କଥାକୁ ଶୁଣି
ବବୁଲ କହିଲା ଖେଳିଛି ଜାଣି ।।



ଛୁଟି ହେଲା ପରେ ସଭିଏଁ ମିଳି
ହସି ହସି ଗଲେ ପିଜୁଳି ବାରି ।
ଜଣେ ଜଣେ ଗଲେ ଡାଳରେ ବସି
ଖେଳିଲେ ଖେଳ ଆନନ୍ଦେ ହସି ।।



ଚାହୁଁ ଚାହୁଁ ହସ ଗଲା ବଦଳି
କାନ୍ଦି କାନ୍ଦି ସବୁ ହୋଇଲେ ଭାଳି ।
ପିଜୁଳି ଡାଳରେ ଥିଲେ ବିରୁଡି
ଗୋଡାଇ ଗୋଡାଇ ଦେଲେ କାମୁଡି ।।



ବାପାଲେ ମାଆଲୋ ସଭିଏଁ କହି
ଧାଇଁ ଧାଇଁ ସେଠୁ ଗଲେ ପଳାଇ ।
ସେଦିନୁ ପିଜୁଳି ବାଡିକୁ କେହି
ଭୁଲ କରି ମଧ୍ୟ ଯାଆନ୍ତି ନାହିଁ ।





# ଗୋଟିଏ ଜହ୍ନକୁ ଅନେକ ତାରା

ଗୋଟିଏ ଜହ୍ନକୁ ଅନେକ ତାରା,
ଜହ୍ନ ଆଲୁଅ ତ ଦିଶଇ ତୋରା·
ତାରା ସବୁ ଖାଲି ଧଅପ୍ ଧଅପ୍
ବେଙ୍ଗ ଡେଉଁଛନ୍ତି ଖଅପ୍ ଖଅପ୍ ॥



ବେଙ୍ଗୁଲୀ ନାନୀତ ଇନ୍ଦର ରାଣୀ
ବୋବାଇ ଦେଲେ ସେ ବରଷେ ପାଣି ।
ବରଷିଲେ ପାଣି ବହୁତ ମଜା
ଖାଇବାକୁ ମିଳେ ବାଦାମ ଭଜା ॥



ଗୋଟିଏ ଗଛରେ ଅନେକ ଫଳ
ଇଏ ସବୁ ଭାଇ ବିଧାତା ଖେଳ ।
ଖେଳିଲେ ବୁଲିଲେ ବଢ଼ଇ ବଳ
ବଳ ପାଇଁ ଲୋଡ଼ା ତଟକା ଫଳ ॥



ଫଳ ମଧ୍ୟେ ଥାଏ ଅନେକ ମଞ୍ଜି
କେଉଁ କାରିଗର ଦେଇଚି ଖଞ୍ଜି ।
ମଞ୍ଜିରୁ ଉଠଇ ପୁଣି ଗଛ
ନ ଜାଣିଲେ ସବୁ ଲାଗଇ ମିଛ ॥









ସତ ମିଛ ସବୁ ଅସତ ଫନ୍ଦା
ସେଥିପାଇଁ ଦିନେ ହୋଇବ ବନ୍ଧା ।
ଜୀବନେ ଚାହିଁଲେ ହେବାକୁ ବଡ
ସତ କଥା କହି ନିଜକୁ ଗଢ଼ ॥



# ଧପଡ ଧପଡ ଧପଡ ଧାଇଁ

ଧପଡ ଧପଡ ଧପଡ ଧାଇଁ
ଗଡିଆରେ ମାଛ ଗୋଟିଏ ନାହିଁ ।
ରାତି ଉଜାଗର ହୋଇଲା ମାଧ
ମାଛ ସବୁ ଯାକ ଖାଇଲା ଓଧ ।





ଓଧ ବାପୁଡାଟି ଚତୁର ବଡ
ମାଛ ଖାଉଥାଏ କଅଡ ମଡ
ଦେଖୁଥିଲା ବସି ବିଲେଇ ନାନୀ
ଆଣିଲା ଯାଇ ସେ ମାଧକୁ ଟାଣି ।



ମାଧ ମୁଣ୍ଡ ହେଲା ଗରମ ଭାରି
ଭାବିଲା ଦେବ ସେ ଓଧକୁ ମାରି ।
ଓଧ ମରିଗଲେ ନଥିବ ଡର
ମାଛ ସବୁଯାକ ହେବ ତାହାର ।

ଏମିତି ଭାବିସେ ଧରିକି ବାଡ଼ି
ଓଧ ଉପରକୁ ଦେଲା ଫୋପାଡ଼ି ।
ବାଡ଼ି ଦେଖି ଓଧ ଡିଆଁଟେ ମାରି
ସେଠାରୁ ସହସା ହୋଇଲା ପାରି ॥





ଦୂରେ ବସିଥିଲା ବିଲେଇ ଛକି
ତାଠେଇ ବାଜିଲା ବାଡ଼ି ଢ଼ୋଓକି ।
ଡାକିଲା ବିଲେଇ ମିଆଁଉ ମିଆଉଁ
ପର ପାଇଁ ଗାତ ନ ଖୋଳ ଆଉ ॥





# କଟର କଟର କଟର କେଁ

କଟର କଟର କଟର କେଏଁ
ବବୁଲୁ କାନ୍ଦୁଛି ଭେଏଁରେ ଭେଏଁ ।
ତାହା ପାଇଁ ଲୋଡ଼ା ଉଡ଼ାଜାହାଜ
ଉଡ଼ିଯିବ ସିଏ ପରୀ ରାଇଜ ।
ପରୀ ରାଇଜଟି ବହୁତ ଦୂର
କହୁଛି ସେଠି ସେ କରିବ ଘର ।।





ଭଟର ଭଟର ଭଟରା ବୁଢ଼ା
କହୁଛି ଖାଇବ ମୁଢ଼ି ଉଖୁଡ଼ା ।
ଦାନ୍ତ ଜମା ନାହିଁ ପାକୁଆ ପାଟି
କଥା କହୁଥାଏ ଓଠକୁ ଚାଟି ।
ଓଠଟି ତାହାର ଦିଶେ ନାଲିଆ
ପାନ ଭାଙ୍ଗି ଭାଙ୍ଗି ବୁଢ଼ୀ ହାଲିଆ ।।



ଫଟର ଫଟର ଫୁଟୁଛି ବାଣ
ମୁନି ନାନୀରତ ଭାଙ୍ଗିଲା ଟାଣ ।
ପୁଅଟି ତାହାର ହେଉଛି ବାହା
କୁନି କଣ୍ଢେଇ ତା'ର କନିଆ ।
ପୁରୋହିତ କହେ କରନା ହେଳା
ଗଡ଼ି ଯାଉଅଛି ବାହାର ବେଳା ।।

ଦଦଦଦ

# ଝଗଡ ଝଗଡ ଝଗଡ ଝାଇଁ

ଝଗଡ ଝଗଡ ଝଗଡ ଝାଇଁ
ଝଗଡା କରନା ତୁମେତ କେହି ।
ଝଗଡା କଲାରୁ ବିଲେଇ ଦୁଇ
ମାଙ୍କଡ଼ ଦେଲାତ ପିଠାକୁ ଖାଇ ।।

ରଗଡ ରଗଡ ରଗଡ ଜାଇ
ଖବର ଆସିଛି ଆସିବେ ଜୋଇଁ ।
ଜୋଇଁଙ୍କ ମୁଣ୍ଡରେ ପାଲିଙ୍କି ଛତା
ଝିଅ ଭିଡିଅଛି ରିବନ ଫିତା ।



ଧପଡ ଧପଡ ଧପଡ ଢ଼ାଇଁ
ହନୁମାଙ୍କଡଟା ପଳାଏ ଧାଇଁ ।
ଗଛରେ ପାଚିଛି ପାଚିଲା ବେଲ
ଥଣ୍ଟ ମାରି କାଉ କରୁଛି ଗେଲ ।।

ଫଅଡ ଫଅଡ ଫାଡଇ କାଠ
ବଡ ହେବାପାଇଁ ପଢ଼ିବ ପାଠ ।
ପାଠ ନ ପଢ଼ିଲେ ସବୁ ଅସାର
ଜୀବନ ହୋଇଯାଏ ନାରଖାର ।।



ଖରଡ ଖରଡ ଖରଡ ଶାଗ
ପଖାଳ ଭାତକୁ ବଢ଼ିଆ ବାଗ ।
ବାଗ ସାଗ କଥା ପଛକୁ ଥାଉ
ଭଲ କାମେ ଆମ ଜୀବନ ଯାଉ ।



# ଇଞ୍ଚୁଡି ମିଞ୍ଚୁଡି



ଇଞ୍ଚୁଡି ମିଞ୍ଚୁଡି କର ଖେଚୁଡି
ଚାଉଳ କୁଲାଏ ଦିଅ ପାଛୁଡି ।
ପାଛୁଡି ପାଛୁଡି ଭାଙ୍ଗିଲା ଚୁଡି
ଆକାଶେ ଉଡୁଛି ରଙ୍ଗୀନ ଗୁଡି ॥



ରଙ୍ଗୀନ ଗୁଡିରେ ଲାଗିଛି ସୂତା
ସୂତାକୁ ଟାଣୁଛି ଚଗଲି ମିତା ।
ବାପା କହିଦେଲେ ଖେଳୁଛୁ କିଆଁ
ଏହା ଶୁଣି ମିତା ମାରିଲା ଡିଆଁ ॥



ଗୁଡିତ ଉଡିଲା ଆପଣା ଛାଆଁ
ତାକୁ ଧରିନେଲା ବାବୁଲା ମିଆଁ ।
ବାବୁଲା ମିଆଁର ମୁଣ୍ଡରେ ଟୋପି
ଟୋପି ଟାଣିନେଲା ମାଙ୍କଡ ଛପି ॥



ବାବୁଲା ଆଖିରୁ ଗଡିଲା ଲୁହ
ମାଙ୍କଡ କହିଲା ରହରେ ରହ ,
ଦେଉଛି ତୋ ଟୋପି ମୁଁ ଫୋପାଡି
କାନ୍ଦନା ଏମିତି କୋରି କଚାଡି ॥

ଇଞ୍ଚିଡି ମିଞ୍ଚୁଡି କର ଖେଚୁଡି
ତଳୁ ଉପରକୁ ଉଡୁଛି ଗୁଡି ॥



# ଫକର ଫକର ଫକର ଫାକୁ

ଫକର ଫକର ଫକର ଫାକୁ
ଭାକୁରର ପାଟି ପାକୁ ପାକୁ
ପାଟିରେ ତାହାର ପଶିଛି ମଣ୍ଡା
ଭାଙ୍ଗିତ ଗଲାଣି ଅଜାଙ୍କ ଅଣ୍ଡା ।।



ଠକର ଠକର ଠକର ଠାଇ
କାଠ ହାଣେ କାଠ ହଣା ଚଢେଇ
କୋରଡ କରିକି କରିବ ଘର
ସାପ ବିଲେଇଙ୍କି ନଥିବ ଡ଼ର ।।



ବକର ବକର ବକଟୀବୁଢ଼ୀ
ବକି ବକି ମୁଣ୍ଡ ଗଲା ବିଗିଡି
ଆଲୁରୁ ବାଲୁରୁ କହୁଛି କଥା
ଶୁଣିଲା ଲୋକର ମୁଣ୍ଡଟି ବଥା ।।

ଝକର ଝକର ଝଅକ ମକି
ମାରି ମାରି ହାତ ଗଲାଣି ଥକି ।
କାଠ ଘସି ହୋଇ ଜଳିଲା ନିଆଁ
ପଶୁପକ୍ଷୀମାନେ ହେଲେ ଛାନିଆଁ ।।



ଢକର ଢକର ହାଣ୍ଡି ଘୋଡଣୀ
ଗବଗବ ହୋଇ ଫୁଟୁଛି ପାଣି ।
ପାଣିରେ ଚାଉଳ ପକେଇ ଦିଅ
ଭାତ ଖାଇବାକୁ ଅନେଇ ରୁହ ।।



# ଭାଇତ ଭାଇ



ଭାଇତ ଭାଇ ଏମିତି ଭାଇ
ଦେଖିନି ମୁହିଁ କାହିଁ ,
କାନ୍ଦି କାନ୍ଦିକା ସାନ ଭଉଣୀ
ବାପାଙ୍କୁ ଦେଲା କହି ॥



ଟିକିଏ ଭୁଲ କରିଲେ ମୁହିଁ
ବସାଇ ଦେଉଛି ବିଧା,
ଯେଉଁ କାମ ମୁଁ କରିଲେ ଟିକେ
ସବୁଥିରେ ଦିଏ ବାଧା ॥



ନିଜେ ନପଢ଼ି କହୁଛି ମୋତେ
ପଢ଼ିବୁ ଯାଆ ତୁ ପାଠ
ସବୁ କଥାରେ ବସିଯାଏ ସେ
ଲଗାଇ ଦେଇଣ ନାଟ ॥



ଯେଉଁଠି ଯାହା ଭାଙ୍ଗଇ ଘରେ
ଥାଏ ତାହାର  ହାତ,
ମାଡ ଖାଇକି କାନ୍ଦିଲେ ମୁହିଁ
ହସେ ଦେଖାଇ ଦାନ୍ତ ।



ଖାଉନି ଜମା ପନିପରିବା
ଲୋଡୁଛି ମାଂସ ମାଛ,
ସାଧା ତିଅଣ ହୋଇଲେ ଘରେ
ନଖାଇ କରେ ନାଚ ।।



ସବୁ ଜିନିଷ କହୁଛି 'ମୋର'
'ତୋର' କିଛି ନାହିଁ,
ଭାଇତ ଭାଇ ଏମିତି ଭାଇ
ଦେଖୁନି କାହିଁ ମୁହିଁ ।।



ସବୁ ଶୁଣିକି କହିଲେ ବାପା-
କାନ୍ଦନା ଆଉ ଝିଅ,
ଭାଇ ଭଉଣୀ ମିଳିକି ଚଳ
ଝରାଇ ହସ ସୁଅ ।।



ପର ଆପଣା ସାନ ଓ  ବଡ
ରଖନା ଜମା ମନେ
ତେବେତ ଯାଇ ଭଲ ମଣିଷ
ପାରିବ ହୋଇ ଦିନେ ।।



# ଅଲର ମଲର ଝଲର ଝାଇଁ

ଅଲର ମଲର ଝଲର ଝାଇଁ
ମନ୍ଦିରରେ ଘଣ୍ଟ ଢ଼ାଆଇଁ ଢ଼ାଇଁ
ଢ଼ାଇଁ ଶବଦରେ ଉଡିଲେ ପାରା
ଖାତର ନକରି ବରଷା ଖରା ।।





ଅକଡ଼ ବକଡ଼ ବମ୍ୱେଇ ବୋଲ
ଯାନି ଯାତରାରେ ବାଜଇ ଢୋଲ ।
ଢୋଲ ସଙ୍ଗେ ବାଜେ ଯୋଡ଼ି ମହୁରୀ
ମହୁରୀ ତାଳରେ ନାଚେ ଗଉରୀ ।।



ଅଟର ମଟର କେଉଁ କଟର
ସାଇଁ ସାଇଁ ଛୁଟେ ଗାଡି ମଟର ।
ଗାଡି ମଟରରେ ଅନେକ ଲୋକ
ଭେଦଭାବ ଭୁଲି ଯାଆନ୍ତି ଦେଖ ।।





ଅଉଲ ମଉଲ ଡଉଲ ଡ଼ିଆଁ
ଗଛରେ ଚଢିଛି ଫକୀର ମିଆଁ ।
ଫକୀର ମିଆଁ ର ମୁହଁରେ ଦାଢି
ଦାଢ଼ି ସେ ଆଉଁସେ ହାତକୁ ଛାଡି ।

# ରୁମୁ ଝୁମୁ ଝୁମୁ ଝୁମୁ କୁ ଝୁମା

ରୁମୁ ଝୁମୁ ଝୁମୁ ଝୁମୁକୁ ଝୁମା
ମେଘ ବରଷୁଛି ଦୁମୁକୁ ଦୁମା ।
ଘଡ ଘଡି ଡାକେ ଘଅଡଘଡ
ଗଛରୁ ପତରୁ ଝଅଡ ଝଡ ॥





ରୁମୁ ଝୁମୁ ଝୁମୁ ଝୁମୁକୁ ଝୁମା
ଭାରି ଭଲ ଲାଗେ ମାଆଙ୍କ ଚୁମା ।
ମାଆଙ୍କ ହାତରେ ଜାଉ ଟାଟିଆ
ନଖାଇ ବୁଲ୍ ବୁଲ୍ ମାରେ ଦାଣ୍ଡିଆ ॥

ରୁମୁ ଝୁମୁ ଝୁମୁ ଝୁମୁ କୁ ଝୁମା
ଘରେ ରହିଅଛି ମାଟିର ଘୁମା ।
ସେଥିରେ ରହିଲା ଧାନ ଚାଉଳ
ଚୁଟିଆ ମୂଷାକୁ ହୋଇଲା କାଳ ॥



ରୁମୁ ଝୁମୁ ଝୁମୁ ଝୁମୁକୁ ଝୁମା
ପାରା ଘୁମୁରନ୍ତି ଘୁମୁରୁଘୁମା ।
ସେଇ ଶବଦରେ ଡରୁଛି ପୁଅ
ସେନେହରେ ତାକୁ କୋଳେଇ ନିଅ ॥





ରୁମୁ ଝୁମୁ ଝୁମୁ ଝୁମୁକୁ ଝୁମା
ଚଗଲା ପିଲାକୁ ଦୁମୁକୁ ଦୁମା ।
ମାଡ ଗାଳି ଦେଇ ଦେଖାନା ଭୟ
ସ୍ନେହ ଶରଧାର ସବୁଠି ଜୟ ॥





# ଇକିଡି ମିକିଡି

ଇକିଡି ମିକିଡି ଦାନ୍ତ କିଡି କିଡି
ବେଲୁନ୍ ଫାଟିଲା ଢ଼ୋଓ,
ଡେଇଁ ଡେଇଁ କରି ଯାଉଥିଲା ଝିଅ
ଶୁଣି କି କାନ୍ଦିଲା ଭୋଓ ।।





ଭୋଓ ଭୋଓ ଶୁଣି ଧାଇଁ ଗଲେ ଅଜା
ହାତେ ଧରି ବଙ୍କା ବାଡି,
କହିଲେ ଝିଅକୁ କାନ୍ଦନା ଆଉତୁ
ଦେବି ମୁଁ କାନ୍ଦକୁ ତଡି ।।

ଦେଖୁଥିଲା ଏହା ଚଗଲା ଭାଇଟା
ଭାବିଲା କରିବ ମଜା,
କଦଳୀ ଚୋପାଟେ ଆଣି ଫିଙ୍ଗିଦେଲା
ଯାଉଥିଲେ ଯହିଁ ଅଜା ।।

ପାଦ ଖସିଗଲା, ପଡିଗଲେ ଅଜା
ଉପରକୁ କରି ଆଁଆ,
ତାଳି ମାରି ଝିଅ ହସିଗଡିଗଲା ,
କେତେ ମଜା ହେଲା ଆହା ।।

# ହରିବୋଲ ଭାଇ ଗୋବିନ୍ଦବୋଲ

ହରିବୋଲ ଭାଇ ଗୋବିନ୍ଦବୋଲ
ପଥର ବୁଡିଲେ ଭାସଇ ସୋଲ ।
କାହିଁକି ଏମିତି ହୁଅଇ ଭାଇ
ବୁଦ୍ଧିବାଟ କିଛି ଦିଶଇ ନାହିଁ ।





ହରି ବୋଲ ଭାଇ ଗୋବିନ୍ଦବୋଲ
ମଣ୍ଡାପିଠା ହୁଏ କେମିତି ଗୋଲ ।
ଗଢିଛି ବସି କେଉଁ କାରିଗର
ଚାରିଆଡ ବନ୍ଦ, ମଝିରେ ପୁର ।।



ହରି ବୋଲ ଭାଇ ଗୋବିନ୍ଦବୋଲ
ପୂଜାପରବରେ ବାଜଇ ଢୋଲ ।
ଢୋଲବାଜୁଥାଏ ଢାଆଁଇଁ ଢାଇଁ
ନାଗରା ଏମିତି ବାଜଇନାହିଁ ।।

ହରି ବୋଲ ଭାଇ ଗୋବିନ୍ଦବୋଲ
ନଈପାରି ପାଇଁ ତିଆରି ପୋଲ ।
ପୋଲ ନଥିଲେ ତ ଛୋଟିଆ ନାଆ
ପାରି ହେବାପାଇଁ ହୁଅଇ ସାହା ॥

ହରି ବୋଲ ଭାଇ ଗୋବିନ୍ଦବୋଲ
ମଣିଷ ଶକତି ଅମୂଲ ମୂଲ ।
ଚନ୍ଦ୍ରରେ ପହଁଚେ ରକେଟ ନେଇ
ସମୁଦ୍ର ଲଂଘଇ ବୁଦ୍ଧି ଖଟାଇ ॥



# ବେଙ୍ଗୁଲୀ ବେଙ୍ଗୁଲୀ ପାଣି ଦେ



ବେଙ୍ଗୁଲୀ ବେଙ୍ଗୁଲୀ ପାଣି ଦେ
ନଈ ସମୁଦର ଭସେଇ ଦେ ।
ଗାଆଁ ଓ ସହର ରଖେଇ ଦେ
ବଢ଼ି ଓ ମରୁଡି ଉଭାଇ ଦେ ।।



ଇନ୍ଦର ରଜାର ଅଟୁ ତୁ ରାଣୀ
ବୋବାଇ ଦେଲେ ତୁ ବରଷେ ପାଣି ।
ପାଣି ବରଷିଲେ ବହୁତ ମଜା
ଲୋଡା ପଡେ ମୁଢ଼ି ବାଦାମ ଭଜା ।।



ଘଡ ଘଡି ମାରେ ତୁହାକୁତୁହା
ମାଡିଆସେ ପୁଣି ବତାସ ବାଆ ।
ବାଆ ବତାସରେ ଭାଙ୍ଗଇ ଘର
ଫସଲ ହୁଅଇ କି ନାରଖାର ।।



କରମ ଆଦରି ପଡେ ମଣିଷ
ସହିବାକୁ ଖାଲି ଦୁଃଖ ଅଶେଷ ।
ପ୍ରକୃତି ହାତରେ ଆମେ ଖେଳଣା
ଦୁଃଖ ସୁଖ ମଧ୍ୟେ ହେଉଛୁ ଟଣା ।।



ବେଙ୍ଗୁଲୀ ବେଙ୍ଗୁଲୀ ଦେଖାନା ଠାଣି
ଦରକାର ଚାହିଁ ବରଷେ ପାଣି ।
ତେବେଯାଇ ସିନା କହିବୁ ରାଣୀ
ପୂଜିବୁ ତୋତେଲୋ ତୋ ମନ ଜାଣି ।।



